# କେତେ ଦୂର
# ପୁରୀରୁ ପୁଷ୍କର

ଡକ୍ଟର ବନମାଳୀ ବାରିକ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# କେତେ ଦୂର ପୁରୀରୁ ପୁଷ୍କର

(କବିତା ସଂକଳନ)

ଲେଖକ : ଡ.ବନମାଳୀ ବାରିକ, ଇଡ଼ିଦା(ବସ୍ତା), ବାଲେଶ୍ୱର
ସଂପର୍କ : ଫର/ବି - ସନି ସିଟାଡେଲ, ଗଜପତି ନଗର, ଭୁବନେଶ୍ୱର-୫

ପ୍ରକାଶକ : କାଳୀପଦ ପଣ୍ଡା, ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ନେଳିଆବାଗ, ଶ୍ରୀକଣ୍ଠପୁର, ବାଲେଶ୍ୱର, ଫୋନ୍ : ୯୪୩୭୦୮୯୨୪୧

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପ୍ରଥମ ସଂସ୍କରଣ : ୨୦୧୮ ।। ମୂଲ୍ୟ : ଟ.୩୦/-

---

**KETE DURA PURIRU PUSKARA**

(Poems)

**Written by : Dr.Banamali Barik,** IRDA(Basta), Balasore
**Contact : 4/B - SUNNY CITADEL,** Gajapati Nagar, BBSR-5

**Publisher :** Kalipada Panda, **SUBARNASHREE PRAKASHINI**
Neliabag, Shreekanthapur, Balasore, Ph.:9437089241

**Cover Design :** Bijay Kumar Pradhan

**First Edition :** 2018 II **Price :** Rs.30/-




ଆଚର୍ଯ୍ୟ ଭାବାନନ୍ଦ

ହେ ତପସ୍ୱୀ, ହେ ବିଦ୍ରୋହୀ
ବିପ୍ଳବର ତମେ ଦୀପ୍ତଶିଖା
ଜଗାଇଛ ମଣିଷକୁ ଆହେ ଜ୍ଞାନଯାତ୍ରୀ
ଚିରକାଳ ସଂଗ୍ରାମର ସଖା -
ଆପଣଙ୍କ ହାତେ ଦେଲି ଏଇ ମୋର କ୍ଷୁଦ୍ର ଉପହାର
ଅଜ୍ଞାନର ପ୍ରୀତି ଇସ୍ତାହାର ।

- ଲେଖକ

# କୃତଜ୍ଞତା ସ୍ୱୀକାର

ସଂକଳନର ପ୍ରକାଶ ଅବସରରେ ସେଦିନର ସହଯାତ୍ରୀମାନଙ୍କୁ ଅତ୍ୟନ୍ତ ଆନନ୍ଦର ସହ ସ୍ମରଣ କରୁଛି । ସେମାନେ ହେଲେ ସଂଘମିତ୍ରା, ସଂଯୁକ୍ତା, ସୁମିତା, ସଂଜୟ, ସୁଧୀର, ନିଖିଳେଶ ଓ ଦିଲ୍ଲୀ ଅଧିବାସୀ ସୁଜାତା । କବିତାଗୁଡ଼ିକର ରଚନାକାଳ ଗୋଟିଏ ବର୍ଷ ମଧ୍ୟରେ ସୀମିତ । ଦିଲ୍ଲୀ, ଭୁବନେଶ୍ୱର, ବାଙ୍ଗାଲୋର ରହଣି ମଧ୍ୟରେ କବିତାଗୁଡ଼ିକ ପରିକଳ୍ପିତ, ଅକ୍ଷରାୟିତ ଓ ପରିମାର୍ଜିତ । ଅଧ୍ୟାପକ ଡକ୍ଟର ପ୍ରଶାନ୍ତ କୁମାର ସେଠୀ, ଧର୍ମଶାସ୍ତ୍ରବିତ୍ ୰ଶ୍ରୀ ରାମଚନ୍ଦ୍ର ପତି ଓ ଓଡ଼ିଆ ସାହିତ୍ୟପ୍ରେମୀ ଇଂଜିନିୟର ବିବେକ କରଙ୍କୁ ସେମାନଙ୍କ ପ୍ରେରଣା ପାଇଁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ବିଶିଷ୍ଟ ଶିକ୍ଷାବିତ୍ ଓ ସୁସମାଲୋଚକ ଡକ୍ଟର ରମାକାନ୍ତ ରାଉତ କବିତାଗୁଡ଼ିକ ପଢ଼ି ସୁଚିନ୍ତିତ ମତ ଦେଇଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ ।

ପ୍ରକାଶନ ଦାୟିତ୍ୱ ନେଇଥିବା କବିବଂଧୁ ଶ୍ରୀ କାଳୀପଦ ପଣ୍ଡା ଓ ଡି.ଟି.ପି. କାର୍ଯ୍ୟରେ ସହାୟତା ଦେଇଥିବା କୁମାରୀ ହରପ୍ରିୟା ବେହେରା(ଟିକି) ଙ୍କୁ ଏ ଅବସରରେ ଅଶେଷ ଧନ୍ୟବାଦ ଜଣାଉଛି ।

– *ଲେଖକ*

# ନିଜକଥା

'Where history ends poetry begins'

(ଏଜରା ପାଉଣ୍ଡ)

ଦିଲ୍ଲୀରୁ ଆଗ୍ରା ଯିବା ବାଟରେ ହଠାତ୍ ମଥୁରା ନିକଟରେ ଆମ ଗାଡ଼ି ଅଟକିଗଲା । ଡ୍ରାଇଭର କହିଲା - ଆପଣମାନେ କୃଷ୍ଣ ଜନ୍ମଭୂମି ଦର୍ଶନ କରି ଆସନ୍ତୁ । ସେଦିନ ମଥୁରା କୃଷ୍ଣମନ୍ଦିର ଦେଖି ସମସ୍ତେ ଅପାର ଆନନ୍ଦ ଲାଭ କଲେ । କାହାର ଥିଲା ଏ ଅଜ୍ଞାତ ନିର୍ଦ୍ଦେଶ ?

ମଧ୍ୟାହ୍ନରେ ଆମେ ସିକନ୍ଦରାରେ ପହଞ୍ଚିଲୁ । ସମ୍ରାଟ ଆକବରଙ୍କର ସମାଧିପୀଠ । ଏଠାରେ ରହିଛି ବିସ୍ତୀର୍ଣ୍ଣ ପ୍ରାନ୍ତର ଓ ସୁରମ୍ୟ ଉଦ୍ୟାନ ମଧ୍ୟରେ ବିଶାଳ ଭବନ । ଜଣେ ନିଃସ୍ୱ ଫକୀରର 'ଆଲ୍ଲା ହୋ ଆକବର' ଡାକ ବିରାଟ ପରିବେଶକୁ ପ୍ରତିଧ୍ୱନିତ କରୁଥାଏ । ଏହା ମୋ ଭିତରେ ଏକ ଭାବାନ୍ତର ଆଣିଦେଲା । ତା'ପରେ ଆମେ ଗଲୁ ଆଗ୍ରା ଫୋର୍ଟ ଓ ତାଜମହଲ ।

ଶାହାଜାହାନ, ମମତାଜ, ଔରଙ୍ଗଜେବ ଓ ଜାହାନ୍ନାରାର କାହାଣୀ ମୋ କବି ମନକୁ ଆନ୍ଦୋଳିତ କଲା । ସ୍ୱାମୀ, ସ୍ତ୍ରୀ, ପିତା, ପୁତ୍ର, ଭାଇଭଉଣୀ ମଧ୍ୟରେ ଥିବା ମଧୁର ଓ ଦୁଃଖଦ ରୂପ ସାମ୍ନାକୁ ଆସିଲା । ସିଂହାସନ, ଅତୁଳ ଐଶ୍ୱର୍ଯ୍ୟ, ବିପୁଳ ପରାକ୍ରମର ପରିଣତି, ଭାଗ୍ୟର ବିଡ଼ମ୍ବନା, ନିୟତିର କ୍ରୂର ପରିହାସ ଭିତରେ ଜୀବନର ଉତ୍ଥାନ ଓ ପତନ, ଅଶ୍ରୁ ଓ ଆନନ୍ଦ, ସ୍ୱପ୍ନ ଓ ହତାଶା ଯେଉଁ ପରିଚୟ

ଛାଡ଼ିଯାଏ ତାହାହିଁ ଦେଖିଲୁ ଆଗ୍ରାରେ, ଫତେପୁର ସିକ୍ରିରେ । ଦେଖିଲୁ ଆକବରଙ୍କ ବୀରତ୍ୱର ଗାଥା, ଅପୁତ୍ରିକ ଜୀବନର ଅବସାଦ, ଆଜମିର ସନ୍ନ୍ୟାସୀର ଆଶୀର୍ବାଦ । ଦେଖିଲୁ ଶାହାଜାହାନ ଓ ମମତାଜଙ୍କ ଅମର ପ୍ରେମ, ଦେଖିଲୁ ପୁତ୍ର ଔରଙ୍ଗଜେବଙ୍କ କାରନାମା, ଦେଖିଲୁ ପୁଷ୍କର-ପୁରୋହିତର ଜଗନ୍ନାଥ ପ୍ରୀତି – ସବୁକିଛି ବିଚାରର ବିଷୟ । କିଏ ସତ୍ୟ, କିଏ ମିଥ୍ୟା, କିଏ ଭାଗ୍ୟ, କିଏ ଭାଗ୍ୟବାନ, କିଏ କର୍ମ, କିଏ ପ୍ରାରବ୍ଧ, କିଏ ପାପ, କିଏ ଅନିତ୍ୟ – ଏ ସବୁର ସ୍ୱରୂପ କ'ଣ ? କୁଆଡ଼େ ଗଲେ ସେଦିନର ରାଜା ମହାରାଜା, କୁଆଡ଼େ ଗଲେ ସେଦିନର ସାଧୁସନ୍ଥ, କୁଆଡ଼େ ଗଲେ ସେଦିନର ପ୍ରଜାପାଟକ, କୁଆଡ଼େ ଗଲେ ସେଦିନର ସେନା ସେନାପତି, କୁଆଡ଼େ ଗଲେ ସେଦିନର ମନ୍ତ୍ରୀ କଟୁଆଳ, କୁଆଡ଼େ ଗଲେ ସେଦିନର ପାଢ଼ୀ ପୁରୋହିତ – ଦୁନିଆ ଚାଲିଛି, ମଣିଷ ବଞ୍ଚିଛି । ଇତିହାସର ଗତିପଥ ବଦଳି ଚାଲିଛି ।

ତାହେଲେ ପୁରାଣ ଇତିହାସ କ'ଣ ଖାଲି ଶିଳାଲିପିର କର୍କଶ କଳା ନା ଭଗ୍ନମନ୍ଦିର ଓ ଦୁର୍ଗର କ୍ଷୟିଷ୍ଣୁ ଆତ୍ମଲିପି ନା କେଉଁ ରାଜବଂଶର ବିଶାଳ କୀର୍ତ୍ତିରାଜି ଅଥବା କେଉଁ ଜନଗୋଷ୍ଠୀର ସାମରିକ ଅଭିଯାନର ଗାଥା, ନା କେଉଁ ବ୍ୟକ୍ତିର ଦୁର୍ନିବାର ଜୟଯାତ୍ରା, ନା କେଉଁ ନାରୀ ରୂପର ପ୍ଳାବନରେ ବିହ୍ୱଳ ଭୂଖଣ୍ଡ, ନା କେଉଁ ବୀରାଙ୍ଗନାର ଅସୀର ଝନତ୍‌କାର, ନା କେଉଁ ସନ୍ଥର ମଙ୍ଗଳମୟ ବାର୍ତ୍ତାରେ ଅନୁରଣିତ ବିଶ୍ୱ ?

କିଏ କରିବ ଏ ସବୁର ତର୍ଜମା ? କିଏ ଲେଖିବ ଏହାର ଇତିବୃତ୍ତ ? କିଏ ଗାଇବ ଏଭଳି ମହିମାର ଗାଥା ?

ମୁଁ ବୋଧହୁଏ ବାଟଭାଙ୍ଗି ଅବାଟରେ ଚାଲିଯାଉଛି । ଭାରତର ପଶ୍ଚିମ ସୀମାନ୍ତରେ ପୁଷ୍କରର ସ୍ଥିତି ବଡ଼ ବିଚିତ୍ର । ଦେଶୀ ଓ ବିଦେଶୀ ଅଜସ୍ର ଯାତ୍ରୀ ଆସୁଛନ୍ତି ସ୍ଥାନର ମହିମାରେ ଆକୃଷ୍ଟ

ହୋଇ । ସବୁଠି ସମସ୍ତଙ୍କର ଅବାଧ ପ୍ରବେଶ । ଆଜମିର ଦରଘାରେ ଦଶହରା ଭିଡ଼ ଆଖିରେ ନ ଦେଖିଲେ ବିଶ୍ୱାସ କରିହେବନି । କିନ୍ତୁ ଜଗନ୍ନାଥଧାମରେ ଖାଲି ନା ନା ନା । ତମେ ମନ୍ଦିରକୁ ଯାଇପାରିବ ନାହିଁ, ତମେ ଠାକୁରଙ୍କୁ ଦେଖିପାରିବ ନାହିଁ, ତମେ ପଶିଲେ ଭୋଗମାରା ହେବ, ତମେ ଛୁଇଁଲେ ଦେହ ମାରା ହେବ, ତମେ ଡାକିଲେ ବାଇଶିପାହାଚ ଥରିଉଠିବ । କାହିଁକି ପୁରୀର ଏ ବିକଳ ରୂପ ? କାହିଁକି ଆମେ ଏତେ ରକ୍ଷଣଶୀଳ ? କାହିଁକି ଆମେ ଏତେ ସ୍ୱଧର୍ମବାଦୀ ? କାହିଁକି ଆମେ ବର୍ଣ୍ଣବାଦୀ ? ଏହା କ'ଣ ଆମର ଦାରିଦ୍ର୍ୟ ? ନା ଏହାର ଆମର ମୂଢ଼ତା ? ନା ଏହା ଆମର ଅପସଂସ୍କାର ?

କେତେଦିନ ଆମେ ଜଗନ୍ନାଥ, ବଡ଼ଦାଣ୍ଡ, ସ୍ୱର୍ଗଦ୍ୱାରର ବଡ଼ପଣ କଥା କହି କହି ଦୁନିଆଁକୁ ହେଣ୍ଡିମାରି ଚାଲିଥିବା ? କେତେଦିନ ? କେତେଦିନ ?

*ବନମାଳୀ ବାରିକ*

# ଭୂମିକା

'କେତେ ଦୂର ପୁରୀରୁ ପୁଷ୍କର' ଡକ୍ଟର ବନମାଳୀ ବାରିକଙ୍କର ଷଷ୍ଠ କବିତା ସଂକଳନ । 'କସ୍ତୁରୀ ନଦୀର-ଗଂଧ', 'ଅନ୍ୟ ଅଂଗୀକାର', 'ରାଗର ନାମ ଅନୁରାଗ', 'ମହାନଦୀ କ'ଣ ବୁଝେ' ? 'ସମୟର ପ୍ରତିଧ୍ୱନି', ତାଙ୍କର ଅନ୍ୟାନ୍ୟ କାବ୍ୟଗ୍ରନ୍ଥ । ସଂଶିତ ସଂକଳନରେ ସାତଗୋଟି କବିତା ସଂଯୋଜିତ ହୋଇଛି । ସେଗୁଡ଼ିକ ହେଲା - ଆଲ୍ଲା ହୋ ଆକବର, କଂସର କାରାଗାର, ପୁଣି ଏକ କାରାଗାର, ରାଜଧାନୀ ସିକ୍ରୀ, ଆଜମିର ଦରଘା, ପୁଷ୍କର, ଶେଷକଥା : ପୁରୀ । ଶେଷ ଦୁଇଟି କବିତାକୁ ଆଧାର କରି ପୁସ୍ତକର ଶିରୋନାମା ପରିକଳ୍ପିତ ହୋଇଥିଲେ ହେଁ ସାତଟିଯାକ କବିତାର ସାରନିର୍ଯାସ ଏଥିରେ ପ୍ରତିଫଳିତ । ପୁଷ୍କର - ଭାରତର ପଶ୍ଚିମ ଭୂଭାଗରେ ଅବସ୍ଥିତ ଏକ ପବିତ୍ର ହ୍ରଦ, ଏକ ମହନୀୟ ପୀଠ, ମୁନିଋଷିଙ୍କର ତପୋଭୂମି, ଦେବଭୂମି, ବ୍ରହ୍ମାଙ୍କର ପ୍ରିୟ ସ୍ଥାନ, ସାବିତ୍ରୀ ଓ ଗାୟତ୍ରୀ(ବ୍ରହ୍ମାଙ୍କର ଦୁଇପତ୍ନୀ)ଙ୍କର କର୍ମଭୂମି । ଏ ସଂପର୍କରେ କୁହାଯାଇଛି -

"ପୁଷ୍କରେ ଦୁଷ୍କରଂ ବାସ ପୁଷ୍କରେ ଦୁଷ୍କରଂ ତପଃ
ପୁଷ୍କରେ ଦୁଷ୍କରଂ ଦାନଂ ଗନ୍ତୁଚୈବ ସୁଦୁଷ୍କରମ୍ ।"

ଏପରି ଏକ ଆଧ୍ୟାତ୍ମିକ ଗରିମାରେ ମହିମାନ୍ୱିତ ସ୍ଥାନ ପୁଷ୍କର - ଯାହା ବାସ, ତପ, ଦାନ ଓ ଯାତ୍ରା ନିମନ୍ତେ ଏକ ଚମତ୍କାର କ୍ଷେତ୍ର । ପୁଷ୍କର ସ୍ନାନରେ ଅତି ପୁଣ୍ୟଲାଭ ହୋଇଥାଏ । ବର୍ଷସାରା ଅଗଣିତ ତପଃଚାରୀ, ତୀର୍ଥଯାତ୍ରୀ, ଦର୍ଶନାର୍ଥୀମାନେ ସେଠାରେ ଠୁଳ ହୋଇଥାନ୍ତି । କବିଙ୍କୁ ଉଦ୍ଧାର କରି କହିଲେ -

"ସେଦିନ ସଂଜୟ ଦେଲା ସନାତନ ଭାରତର
ପୁଣ୍ୟ ପରିଚୟ,
ପୁଷ୍କରରେ ପୁଣ୍ୟ ସ୍ନାନ ଦେବଲୋକ, ପିତୃଲୋକ,
ମୋହ ଆଉ ମୁକ୍ତିର ଅନ୍ୱୟ ।"

ପବିତ୍ର କ୍ଷେତ୍ର ପୁଷ୍କରର ସୃଷ୍ଟିତତ୍ତ୍ୱ ବି ରହସ୍ୟମୟ । କବିତାରେ ତାହା ଉନ୍ମୋଚନ କରି କବି କହିଛନ୍ତି - ବ୍ରହ୍ମାଙ୍କର କରଶୋଭିତ ପଦ୍ମର ତିନୋଟି ପାଖୁଡ଼ା ଖସି ଗୋଟିଏ ଗୋଟିଏ ପୁଷ୍କର ସୃଷ୍ଟିହେଲା ଏବଂ ଦେବସଭା ଆହୂତ ହୋଇ ତୀର୍ଥରାଜର ମାନ୍ୟତା ଲାଭକଲା । ପୁଷ୍କର କ୍ଷେତ୍ରରେ କବିଙ୍କର ପିତୃପୁରୁଷଙ୍କୁ ଆହ୍ୱାନ, ପ୍ରଣାମ ଓ ପିଣ୍ଡଦାନ ଅତ୍ୟନ୍ତ ହୃଦ୍ୟ -

"ହେ ମୋର ପୂଜ୍ୟପିତା, ପୂଜ୍ୟ ମାତା, ପ୍ରପିତା, ପ୍ରମାତା
ଯେତେସବୁ ସ୍ୱର୍ଗବାସୀ ଜ୍ଞାତିବଂଧୁ ଆଉ ଯେତେ ଅଜ୍ଞାତ ମମତା
ଜଳ ନିଅ, ଫଳ ନିଅ, ଅନ୍ନ ନିଅ, ବସ୍ତ୍ର ନିଅ
ନିଅ ମୋର ଧନଧାନ୍ୟ ସକଳ ସଂପଦ,
ମୁଁ ଅଧମ ମୂଢ଼ମତି ହେ ଅତୃପ୍ତ ଆତ୍ମାଗଣ
କ୍ଷମାକର ମୋର ଅପରାଧ ।"

କବି ତାଙ୍କ ପୂର୍ବପୁରୁଷଙ୍କୁ ପିଣ୍ଡଦାନ କରି କୃତାର୍ଥ ହେଲେ । କ୍ଷେତ୍ର ପରିକ୍ରମା ପରେ, ଯେତେବେଳେ ପୁରୋହିତ ତାଙ୍କ ନାମ ଓ ଧାମର ବିଶେଷ ପରିଚୟ ଜିଜ୍ଞାସା କରିଛନ୍ତି, ସେ ଶ୍ରୀ ଜଗନ୍ନାଥ କ୍ଷେତ୍ରର ବ୍ୟକ୍ତି ବୋଲି ଜାଣି ଗଦ୍‌ଗଦ୍ ହୋଇଯାଇଛନ୍ତି । ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରର ମହିମା ଉପଲବ୍ଧି କରି ଏଠାରେ ତାଙ୍କର ଚାରିମଠ ମଧ୍ୟରୁ ଏକ ମଠ ସ୍ଥାପନ କରିଥିଲେ । (ପୁରୀ, ବଦ୍ରିକା, ଦ୍ୱାରିକା, ରାମେଶ୍ୱର)

'ନୀଳାଦ୍ରି ମହୋଦୟ'ରେ କୁହାଯାଇଛି –

"ବର୍ଷାଣାଂ ଭାରତଶ୍ରେଷ୍ଠ ଦେଶାନାଂ ଉତ୍କଳଂ ଶ୍ରୁତଂ

ଉତ୍କଳସ୍ୟ ସମଦେଶଃ ନାସ୍ତି ନାସ୍ତି ମହୀତଳେ ।"

ଶ୍ରୀ ଶଙ୍କରାଚାର୍ଯ୍ୟ ତାଙ୍କର ଜଗନ୍ନାଥାଷ୍ଟକ'ରେ ତ୍ରିମୂର୍ତ୍ତିଙ୍କୁ ଲକ୍ଷ୍ୟ କରି କହିଛନ୍ତି –

"ମହାମ୍ଭୋଧେ ସ୍ଥିର କନକ ରୁଚିରେ ନୀଳ ଶିଖରେ

ବସନ୍ ପ୍ରସାଦାନ୍ତ ସହଜ ବଳଭଦ୍ରେଣ ବଳିନା

ସୁଭଦ୍ରା ମଧ୍ୟସ୍ଥ ସକଳ ସୁରସେବାବସର ମଦୋ

ଜଗନ୍ନାଥ ସ୍ୱାମୀ ! ନୟନ ପଥଗାମୀ ଭବତୁମେ ।"

ସଂକଳନର ଶେଷକବିତା ହେଉଛି 'ଶେଷକଥା : ପୁରୀ' । ଜଗନ୍ନାଥଙ୍କୁ କେତେ ରୂପେ, କେତେ ଭାବେ, କେତେ ଢଙ୍ଗରେ ଓ କେତେ ରଙ୍ଗରେ ଭକ୍ତ ଆରାଧନା କରିଛି । ସମର୍ପି ଦେଇଛି ତାଙ୍କ ଚରଣ ତଳେ, ବିହ୍ୱଳିତ ହୋଇଯାଇଛି ତାଙ୍କ ଭାବ ରହସ୍ୟ ଓ ବିରାଟ ବ୍ୟାପ୍ତି ନିକଟରେ । ସେ ତଟସ୍ଥ ହୋଇଛନ୍ତି – ଜଗନ୍ନାଥ କାହାର ? ଧନୀର ? ଦରିଦ୍ରର ? ଆର୍ତ୍ତର ? ଦାମ୍ଭିକର ? ଭକ୍ତର ? ଶୋଷକର ? ଶୋଷଣର ? ନା ଆଉ କାହାର ? କବିଙ୍କ ଦୃଷ୍ଟିରେ –

"ତମେ ରାମ, ତମେ କୃଷ୍ଣ, ତମେ ବୁଦ୍ଧ, ତମେ ଜୀନ ତୀର୍ଥଙ୍କର

ତନ୍ତ୍ରର ମହାଭୈରବ, କେତେବେଳେ ସଦାଶିବ,

କେତେବେଳେ ଶ୍ରୀଦୁର୍ଗା ଶଙ୍କର ।"

ଏପରି ଜଗନ୍ନାଥ ସର୍ବଧର୍ମ ମତର ସମନ୍ୱୟ । ତାଙ୍କୁ କଳନା କରିବା ଶକ୍ତି କାହାର ଅଛି ? ତେଣୁ ସେ ଅତି ଦୀନହୀନ ଭାବରେ କହିଦେଲେ –

"ମୁଁ ତ କେଉଁ ଧୂଳିକଣା ମୁଁ କି ଜାଣେ ପାହାଡ଼ର ମୂଳ
କେହି ମୋତେ କହିଦିଅ ମିଛ କ'ଣ ସତ କ'ଣ, ଖୋଲିଦିଅ
ଆଖିର ପଟଳ ।"

ଭକ୍ତ ସୁଲଭ ନ୍ୟୁନଭାବ ପ୍ରଦର୍ଶନ କରି କବି ଜଗନ୍ନାଥଙ୍କ ଠାରେ ମିନତି କରନ୍ତି । ପଶ୍ଚିମ ରାଜସ୍ଥାନର ପୁଷ୍କର କ୍ଷେତ୍ରରୁ ଆସି ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କ ଠାରେ ତାଙ୍କର ଯାତ୍ରା ସମାପନ ହୁଏ ।

ପୁଷ୍କର ଯିବା ବାଟରେ ସେ ଆଗ୍ରା, ଫତେପୁର ସିକ୍ରୀ, ଆଜମିର ଆଦି ସ୍ଥାନ ପ୍ରଦକ୍ଷିଣ କରିଛନ୍ତି । ଆଜମିର ଦର୍‌ଘାରେ କବି ଉପଲବ୍ଧି କରିଛନ୍ତି ସର୍ବଧର୍ମ - ସମନ୍ୱୟର ଚେତନା, ମହାମାନବର ଭାବ । ଅବଶ୍ୟ ସେତେବେଳେ ଜଗନ୍ନାଥଙ୍କ ବିଶ୍ୱଭାବ ତାଙ୍କ ମାନସପଟରେ ଉଙ୍କିମାରେ । କିନ୍ତୁ ସେ ବ୍ୟଥିତ ହୁଅନ୍ତି ପଣ୍ଡା ଓ ସେବାୟତମାନଙ୍କର ଯାତ୍ରୀ ଶୋଷଣ / ଲୁଣ୍ଠନ ମନୋବୃତ୍ତି ଦେଖି । ସେହିପରି ଯେତେବେଳେ ଖାଇବାକୁ ନ ପାଇ ବହୁଲୋକ ଅନାହାରରେ ତହଳ ବିକଳ ହୁଅନ୍ତି, ସେତେବେଳେ ଶ୍ରୀମନ୍ଦିର ରକ୍ଷଣଶୀଳତା ଯୋଗୁଁ ବିପୁଳ ପରିମାଣରେ ରନ୍ଧାଖାଦ୍ୟକୁ ପୋତିଦେବା କେତେଦୂର ଯୁକ୍ତିସଂଗତ ?

ଏ ସଂପର୍କରେ କବିଙ୍କ ତୀର୍ଯ୍ୟକ୍ ଦୃଷ୍ଟି -

"ଆଜମିର ପାହାଡ଼ ଶିଖରୁ ମନେପଡ଼େ ଜଗନ୍ନାଥ ଭକତବତ୍ସଳ
ରନ୍ଧାଭୋଗ ନଷ୍ଟହୁଏ ହୁଅ ତୁମେ ତହଳ ବିକଳ ।
ପଣ୍ଡା ପଡ଼ିଆରୀ ଦଳ ଖୋଜୁଥାନ୍ତି କିଏ ଛୁଆଁ କିଏ ସେ ଅଛୁଆଁ
କି ନିଶାପ କର ବସି ଜଗତର ନାଥ, ତମେ ପରା କୋଠଭୋଗ ଖିଆ ।"

କବିଙ୍କର ଏହା ପ୍ରଭୁଙ୍କୁ ସ୍ତୁତି ଛଳରେ ନିନ୍ଦା, ଏକ ନିଆରା ଭକ୍ତିର ଆଲେଖ ।

'ଆଲ୍ଲା ହୋ ଆକବର' କବିତାର ବକ୍ତବ୍ୟ ଏତେ ସ୍ପଷ୍ଟ ନୁହେଁ । ତେବେ ଘଟଣାକ୍ରମେ ଇତିହାସ ପୃଷ୍ଠାରୁ ଉତ୍‌କୀର୍ଣ୍ଣ ହୁଅନ୍ତି ଆଲ୍ଲାମ ଆଜାମ ଗିରି ଦିନ୍ ଇଲ୍ଲାହି

ଆକବର । ଜଣେ ଫକୀର 'ଆଲ୍ଲା ହୋ ଆକବର", ତାହା ଗାଇ ପରିବେଶକୁ ଗମ୍ଭୀର କରିଥିବା ବେଳେ କବି ସମାଧି ପରିକ୍ରମା ଅବସରରେ ଖୋଜନ୍ତି ତାଙ୍କ ଅମ୍ଳାନ ଯଶ ଓ ବିଶାଳ ଉଦାର ହୃଦୟକୁ ।

କବିତା ପ୍ରତିଧ୍ୱନି :

"ଆଲ୍ଲାର କରୁଣା ପାଇଁ କାହାର ଏ କରୁଣ ପ୍ରାର୍ଥନା

ପ୍ରତିଧ୍ୱନି କହେ - ଭୟ ନାହିଁ, ଭୟ ନାହିଁ, ଜମା ଭୟ ନାହିଁ ।"

'ରାଜଧାନୀ ସିକ୍ରି'ରେ ସମ୍ରାଟ ଆକବରଙ୍କର ଭିନ୍ନଭିନ୍ନ ଧର୍ମରେ ଦୀକ୍ଷିତା ତିନିରାଣୀଙ୍କ ଧର୍ମଭାବନା ଓ ମାନସିକତା ରୂପାୟିତ ହୋଇଛି । ତାଙ୍କ ରାଜ୍ୟ ଶାସନର ଧାରା, ପ୍ରଜା ସଂପ୍ରୀତି ଓ ଧାର୍ମିକ ସଦ୍‌ଭାବନା ଯୁଗଯୁଗ ପାଇଁ ମହାନ ଆଦର୍ଶର ପରଂପରା ପାଳଟିଛି । 'କଂସର କାରାଗାର' କବିତାରେ କବି ପ୍ରଶ୍ନ କରିଛନ୍ତି -

"କାରାଗାରମାନେ କ'ଣ କଳାରାତି ଅଂଧକାର

କାରାଗାର ମାନେ କ'ଣ କଂସର ରାଜୁତି ?"

କିନ୍ତୁ ସେଇ କଳାରାତି, ଅଂଧକାର ପେଟ ଚିରି ହୁଏତ ଜନ୍ମ ନିଏ କଳାକାହ୍ନୁ, ଯିଏ ଅନ୍ୟାୟର ଦାଉଦାଉ ନିଆଁକୁ ନିର୍ବାପିତ କରିଦିଏ ଏବଂ ତା'ର ଜରାୟୁ ବିମଥିତି କରି ଜନ୍ମ ନିଅନ୍ତି ମାର୍କ୍ସ, ମାଓ, ୟଂସୁକି ଏବଂ ଆଉ ଆଉ ବିପ୍ଳବୀମାନେ - ଯେଉଁମାନେ ଦୁନିଆରୁ କଷଣ, ଶୋଷଣ ଆଉ ଅନ୍ୟାୟ ଅନୀତିକି ଲୋପକରି ଜନତାର କଲ୍ୟାଣ ସାଧନ କରିଥାନ୍ତି ।

କଂସର ବନ୍ଦୀଶାଳାଠାରୁ ଭିନ୍ନ କାରାଗାରର କଥା କବି କହିଛନ୍ତି - ଯେଉଁଠି ପିତାକୁ ଅବରୁଦ୍ଧ କରି ପୁତ୍ର କୈଫିୟତ ତଲବ କରେ । ଉଭୟର ପୃଷ୍ଠଭୂମି ସେଇ ଯମୁନାକୂଳ । କେଉଁଠି ଆର୍ବିଭାବ ଘଟିଥିଲା ପରମ କାରୁଣିକ କୃଷ୍ଣଙ୍କର । କେଉଁଠି ରାଜତ୍ୱ କରୁଥିଲେ ତାଜମହଲର ସ୍ରଷ୍ଟା ସମ୍ରାଟ ଶାହାଜାହାନ । ତଫାତ୍ କେବଳ ସମୟର ବ୍ୟବଧାନ । କୃଷ୍ଣଙ୍କର ଲୀଳା ତ ସମସ୍ତେ ଜାଣନ୍ତି । କିନ୍ତୁ ଅନେକ ଜାଣନ୍ତି ନାହିଁ ଶାହାଜାହାନଙ୍କ କରୁଣ ଜୀବନର ବ୍ୟଥା । ପ୍ରିୟତମା ମମତାଜଙ୍କ ସ୍ମୃତିରେ

ନିର୍ମିତ ସମାଧି ମନ୍ଦିର ପାଇଁ ରାଜକୋଷରୁ ବିପୁଳ ଅର୍ଥବ୍ୟୟର କାରଣ ଖୋଜୁଛି ପୁତ୍ର ଔରଙ୍ଗଜେବ ଏବଂ ସେଥିପାଇଁ ସେ ବନ୍ଦୀ କରିଛି ପିତାଙ୍କୁ । ଛିନ୍ନ କରିଛି ସିଂହାସନ । କବିଙ୍କର ପ୍ରଶ୍ନିଳ ଜିଜ୍ଞାସା –

"ତାଜ ଆଉ ମମତାଜ କେହି କେବେ ବୁଝିଛ କି
ଶାହାଜାହାନ କାରାର କାହାଣୀ
କେହି କେବେ ବୁଝିଛ କି ରାଜତ୍ୱ ବା ପିତୃତ୍ୱ ବା
ପତିତ୍ୱର କରୁଣ ରାଗିଣୀ ।"

ଏଠି ସବୁ ଏକ 'ହୋକ୍ସ', ଏକ ଉପରଠାଉରିଆ ଲୌକିକ ସଂପର୍କ, କେହି କାହାକୁ ବୁଝିବାର ସାମାନ୍ୟ ଉପକ୍ରମ କରିନାହିଁ । ଇଏ ଦୁନିଆ ଏକାନ୍ତ ଆତ୍ମୀୟଙ୍କ ମଧ୍ୟରେ ଥିବା ସଂପର୍କ । କବିତାରେ ଏକ ଚମତ୍‌କାର ବିଦ୍ରୂପ ବା 'ଆଇରନି' ରହିଛି । ଜଣେ ସ୍ୱପ୍ନବିଳାସୀ ପ୍ରେମିକ, ଯିଏ ମୃତ ପତ୍ନୀର ଏବଂ ପ୍ରେମର ଶ୍ରେଷ୍ଠ ପରାକାଷ୍ଠା ଶଙ୍ଖ ମଲମଲ ପଥରର ସୌଧ ଗଢ଼ିଲେ । ବିପରୀତ କ୍ରମରେ ବାସ୍ତବବାଦୀ ପୁତ୍ର ଜୀବିତ ପିତାଙ୍କୁ ରାଜକୋଷର ଅପବ୍ୟୟ ଦାୟରେ କାରାଗାରରେ ନିକ୍ଷେପ କଲେ । ଏହାହିଁ କବିତାର ସବୁଠୁଁ ବଡ଼ ବିଦ୍ରୂପ । କାରାଗାରକୁ ଭିତ୍ତି କରି ଦୁଇଟି ଦୀର୍ଘ କବିତା ସଂକଳନରେ ସ୍ଥାନିତ, ଯାହା ମୁଖ୍ୟ ଥିମ୍‌କୁ ପ୍ରଭାବିତ କରୁଛି । କବି ଡ.ବାରିକ ଏହି ସାତଟି କବିତାରେ ମୁଖ୍ୟ ଥିମ୍‌କୁ ଅତି ସହଜ ଓ ସ୍ୱାଭାବିକ ଭାବରେ ପ୍ରକାଶ କରିଛନ୍ତି । ବାହ୍ୟତଃ କବିତାଗୁଡ଼ିକ ଇତିହାସ ବା ଧର୍ମ ଆଟୋପରେ ସଜ୍ଜିତ ଥିଲେ ହେଁ ଜୀବନର ସତ୍ୟ ଉପରେ ଆଧାରିତ । ଶୈଳୀ ଖୁବ୍ ସ୍ୱଚ୍ଛ ଓ ଶବ୍ଦମାନେ ପ୍ରତୀକାତ୍ମକ । ବିଦ୍ରୂପର ଛଟାରେ କବିତାଗୁଡ଼ିକ ରସାଣିତ । 'କେତେ ଦୂର ପୁରୀରୁ ପୁଷ୍କର ?" ନିଶ୍ଚିତ ଭାବେ ଡ.ବାରିକଙ୍କର ଏକ ସଫଳ ସୃଷ୍ଟି ।

**ଡ.ରମାକାନ୍ତ ରାଉତ**
ଉପରସାହି, ଲକ୍ଷ୍ମୀସାଗର, ଭୁବନେଶ୍ୱର

## କବିତା କ୍ରମ

## ଆଲ୍ଲା ହୋ ଆକବର !

॥ ୧ ॥

ଆକବରଙ୍କ ସମାଧି ପୀଠରେ
ମଧ୍ୟାହ୍ନରେ କିଏ ତମେ ରିକ୍ତ ପଥଚାରୀ
ଆଲ୍ଲାଙ୍କ ବନ୍ଦନା ଗାଇ
ପଢୁଅଛ ବଂଚିବାର କରୁଣ ଶାୟରୀ ।

॥ ୨ ॥

ହେ ମହାମିହମ ସମ୍ରାଟ
ଇତିହାସେ ଅଲିଭା ସ୍ୱାକ୍ଷର
ତମ ପ୍ରଜ୍ଞା ତମ ପରାକ୍ରମ ବଳେ
ଏ ଭୂମି ପାଲଟିଗଲା
ଉଦାର ସୁନ୍ଦର ।
ବିଶ୍ୱରେ ଉଡ଼ିଲା ତମ କୀରତି ଚିରାଳ
ଠୁଳ ହେଲେ ତମ ସିଂହାସନ ପାଶେ
କେତେ କବି କେତେ ଶିଳ୍ପୀ
ସ୍ତବ୍ଧ ହେଲା କାଳ ।

॥ ୩ ॥

ଜାହପନା !

ତମେ ଏଠି ବିଶ୍ରମିଛ ବିଶାଳ ଭବନେ

ରମ୍ୟ ଉପବନେ,

ଅଗଣିତ ଦର୍ଶକଙ୍କ କୁତୁହଳୀ

ବିସ୍ମୟ ନୟନେ ।

ସେ କେଉଁ ଫକୀର ଅବା ପଥଚାରୀ

ଡାକୁଅଛି ତୁହାଇ ତୁହାଇ

ଆଲ୍ଲାର କରୁଣା ପାଇଁ

ତାହାର ଏ କରୁଣ ପ୍ରାର୍ଥନା,

ପ୍ରତିଧ୍ୱନି କହେ - ଭୟ ନାହିଁ, ଭୟ ନାହିଁ

ଜମା ଭୟ ନାହିଁ ।

॥ ୪ ॥

ବିଦାୟ ସିକନ୍ଦରା ! ବିଦାୟ ହେ ମହାଭାଗ !

ହେ ବିଶ୍ୱ ବିଜୟୀ ବୀର । ଆକବର ।

ଧନ୍ୟ ତମ ମରଣର ଉତ୍ତୀର୍ଣ୍ଣ ଯୋଜନା,

ବିରାଟ ଜୀବନ ସାଥେ

ମୃତ୍ୟୁହୀନ ଅକ୍ଷୟ କଳ୍ପନା ।

ଧନ୍ୟ ତମ ପୁତ୍ରର ପ୍ରୟାସ

ଧନ୍ୟ ତମ ପ୍ରଜା ପାରିଷଦ,

ଆଜି ମୁଁ ଯାଉଛି ଫେରି

ସାଥେ ଘେନି ଦେହହୀନ

ତମ ସୁବିଶାଳ ହୃଦ ।

♦ ♦ ♦

# କଂସ କାରାଗାର

॥ ୧ ॥

ଯେଉଁଠାରେ ନିର୍ଯାତନା, ଯେଉଁଠାରେ ଜଳେ
ଅନ୍ୟାୟର ଦାଉ ଦାଉ ନିଆଁ,
ସେହିଠାରେ ଦେବକୀ ଗର୍ଭରୁ
ଡାକଦିଏ କୃଷ୍ଣ କୁଆଁ କୁଆଁ ।

॥ ୨ ॥

ଅକସ୍ମାତ୍ ଅଟକିଲା ଆମ ରଥ
ଆମ ଯାତ୍ରାପଥେ ଆହା କାହାର ଡାକରା ?
କୃଷ୍ଣର ଜନମ ଭୂମି, ଦେବତାର ଲୀଳାଭୂମି,
ପୁଣ୍ୟଭୂମି ପବିତ୍ର ମଥୁରା ।
ମାଟିର ଏତିକି ମାୟା । କୃଷ୍ଣ ମାୟା ହୋଇଥିବ
କେଉଁ ପରି ବିଚିତ୍ର ସରସ ?
ଯାହାର ମାୟାରେ ମତ୍ତ ମୀରାବାଇ, ଶ୍ରୀଚୈତନ୍ୟ,
ମାଧବେନ୍ଦ୍ର, କବି କୃଷ୍ଣ ଦାସ ॥
ଜାଣେ ନାହିଁ କାହିଁକି କେଜାଣି ।
ସବୁ ଥିଲା ଖାଲି ଅଘଟଣ ।

ଜାଣେ ନାହିଁ କାହିଁକି କେଜାଣି
କେଉଁ ଅଜବ ମାୟାରେ -
ମହକିଲା ଆମ ଦେହ ଆମ ମନ ପ୍ରାଣ ॥

॥ ୩ ॥

ତମେ କୃଷ୍ଣ ଜଗନ୍ନାଥ । ଭାଇ ବଳରାମ ସାଥେ
ଲଗାଇଛ ଲୀଳା ନୀଳାଦ୍ରିରେ ।
ମଥୁରାରେ ଆବିର୍ଭାବ । ଗୋପରେ ଶୈଶବ ଲୀଳା ।
ପୁଣି ମଥୁରାରେ ପଣ୍ଡକରି କଂସର କୌଶଳ ।
ରାଜପଣ କଲ ଦ୍ୱାରକାରେ ॥
ସେଦିନ ପ୍ରବଳ ବର୍ଷା, ବିଜୁଳି ଓ ଘଡ଼ଘଡ଼ି
ଏବଂ ମେଘ ରଡ଼ି
ଖୋଲିଯାଏ ଲୁହାର ଶିକୁଳି ।
ଅସହାୟ ବସୁଦେବ ପଥ ଚାଲେ ଖୋଜି ଖୋଜି
ନିରାପଦ ଆଶ୍ରୟର ଆଶାରେ ଉଚ୍ଛୁଳି ॥
ହେ ଅନନ୍ତଶାୟୀ ବିଷ୍ଣୁ ତମେ କ'ଣ ଲୀଳାୟିତ
ଫଣାମୟ ମସ୍ତକର ମଣିର ଦ୍ୟୁତିରେ
ଆଜିର ଏଇ ଘନ ଘୋର ମେଘଳ ରାତିରେ
ଚାଲୁଛ କଠିନ ପଥ
ଯମୁନାର ଉଜାଣି ସୁଅରେ ॥

ଧନ୍ୟ କଂସ କାରାଗାର
ଧନ୍ୟ ଏଇ ମଥୁରା ନଗର,
କୃଷ୍ଣର କୀରତି ଗାଥା ଗାଉଥିବ
ଏ ଦୁନିଆ ଯୁଗ ଯୁଗାନ୍ତର ॥

॥ ୪ ॥

କାରାଗାର ମାନେ କ'ଣ କଳାରାତି, ଅଂଧକାର
କାରାଗାର ମାନେ ଖାଲି
କଂସର ରାଜୁତି ।
କଳାରାତି ପେଟ ଚିରି ଜନ୍ମ ନିଏ
ଷୋଳକଳାଧାରୀ କୃଷ୍ଣ ।
ଚାରିଆଡ଼େ ଘଣ୍ଟ ଘଣ୍ଟା
ସକାଳ ସୂର୍ଯ୍ୟର ଆରତି ॥
କଳାରାତି ମାନେ ହିଁ ତ ମାର୍କ୍ସ, ମାଓ,
- ବିଶ୍ୱବ୍ୟାପୀ ସର୍ବହରା ଶ୍ରମିକର
ମୁକତିର ଗାଥା ।
କଳାରାତି ମାନେ ହିଁ ତ ଗାନ୍ଧୀ ଓ ମଣ୍ଡେଲା
ଜୟପ୍ରକାଶ, ୟାଂସୁକି ଓ ତସ୍‌ଲିମାର
ବେଦନା ଓ ବ୍ୟଥା ॥



# ପୁଣି ଏକ କାରାଗାର

॥ ୧ ॥

ପୁନଶ୍ଚ ଯମୁନାକୂଳ । ପୁଣି ଏକ କାରାଗାର ।
ବନ୍ଦୀ ଯହିଁ ଶା'ଜାହାନ । ଭାରତ ଈଶ୍ୱର ।
ଅଦୂରରେ ମମତାଜ ଓ ତାଜମହଲ ।
ଅଶ୍ରୁରେ ସ୍ମୃତିରେ ଭିଜି ଦିନ ହଜେ
ପ୍ରୀତିରିକ୍ତ ଆକୁଳ ପ୍ରାଣରେ ॥
ଶା'ଜାହାନ୍ ! ତମ ଅପରାଧ ।
ଦେଶର ଅମାପ ଧନ ବିନିମୟେ
ଗଢ଼ିଅଛ ମର୍ମର ସଉଧ ॥
କେହି କେବେ ବୁଝିଛ କି ଶା'ଜାହାନ୍ କାରାର କାହାଣୀ ।
ଅଭିଯୋଗକାରୀ ଆଉ କେହି ନୁହେଁ,
କ୍ଷମତାପ୍ରମତ୍ତ ପୁତ୍ର ଆଣିଅଛି ଦୀର୍ଘ ଅଭିଯୋଗ ।
ରାଜକୋଷ ପ୍ରତ୍ୟେକ ମୁଦ୍ରାର ସୁବିଚାର ଚାହେଁ ॥
ତାଜ୍ ଆଉ ମମତାଜ
କେହି କେବେ ବୁଝିଛି କି
ରାଜତ୍ୱ ବା ପିତୃତ୍ୱ ବା ପତିତ୍ୱର କରୁଣ ରାଗିଣୀ ॥

|| ୨ ||

ଜାହାନ୍ନାରା ! ପ୍ରିୟ କନ୍ୟା –

ତମେ କିଛି ବୁଝିପାର ପିତାର ହୃଦୟ ।

ଏକଦା ମହାମହିମ ଭାରତର ଅଧିପତି କ୍ଷମତାକୁ କେଉଁପରି

ଉପହାସ କରିପାରେ ନିଷ୍ଠୁର ସମୟ ॥

ମାତ୍ର ଚିରକାଳ ପିତା ପୁତ୍ର

ସଂପର୍କରେ ଅବୁଝା ଗଣିତ

କିଏ ବୁଝେ କିଏ ବୁଝିପାରେ ନାହିଁ ।

ଶା'ଜାହାନ ବନ୍ଦୀର ଜୀବନ

ସରିଗଲା କାନ୍ଦି କାନ୍ଦି,

କିନ୍ତୁ ଶଙ୍ଖଶୁଭ୍ର ତାଜ୍ ଅହରହ କାନ୍ଦେ କଇଁ କଇଁ ॥

॥ ୩ ॥

ଏକଦା ପ୍ରେମିକ କବି ପ୍ରଜାପତି
ପଢ଼ିଥିଲା ଇତିହାସ ପୃଷ୍ଠାରେ ପୃଷ୍ଠାରେ,
ତାଜ୍‌ର ମହିମା ।
ତାପରେ ଭେଟିଲା ଦିନେ କୋଣାର୍କରେ
କେଉଁ ଏକ ଅପାଶୋରା ମଧ୍ୟାହ୍ନକୁ
ଏବଂ ତା'ର ସ୍ୱପ୍ନିଳ ସୁଷମା
ଆଜି ପୁଣି ଏ ତାଜ୍‌ମହଲ
ଢ଼ାଳିଦିଏ ଅପରାହ୍ଣ ସୂର୍ଯ୍ୟର ରକ୍ତିମା ।
ମୋ ଦେହରେ ଭରିଯାଏ ଯୌବନର ରଂଗ ଏବଂ
ଭୁଲିଯାଏ ବାର୍ଦ୍ଧକ୍ୟର ସୀମା ।
ତାଜ୍ ଏକ ସ୍ମୃତିର ସମାଧି
ଯୁଗଯୁଗ ବଂଧନର ଦୀର୍ଘ ଇତିହାସ ।
କୋଣାର୍କ ବି ବହୁ ସ୍ମୃତି ବହୁ ସ୍ୱପ୍ନ ବିହ୍ୱଳିତ
ବିଶାଳ ମନ୍ଦିର । ହେଉ ପଛେ ପ୍ରଜାପତି ପାଇଁ
କ୍ଷଣିକର ଉଜ୍ଜ୍ୱଳ ଆଭାସ ।



# ରାଜଧାନୀ - ସିକ୍ରୀ

॥ ୧ ॥

ତମ ସହ ଭେଟ ହେଲା - ଅଶରୀରୀ ଆକବର,
ସିକ୍ରୀର ଉଆସେ, ବହୁ ବର୍ଷ ପରେ ।
ହେ ମହାମହିମ ସମ୍ରାଟ !
ସମୟର ବିରାଟ ବିସ୍ମୟ
ବିଧାତାର ସୁନା ହସ ଗାରେ ॥
ତିନି ମହାରାଣୀ ମେଳେ ହେ ସମ୍ରାଟ
ଶୁଣୁଅଛ ବାଇବେଲ୍, ଗୀତା ଓ କୋରାନ୍ ।
ଭକ୍ତିମତୀ ମରିୟମ, ବୀରାଙ୍ଗନା ଯୋଧାବାଇ,
ରୂପମତୀ ତେହରାନା ସୁଲତାନା ॥
ବିଶାଳ ଏ ଭାରତ ଧରଣୀ
ଧନଧାନ୍ୟ ଐଶ୍ୱର୍ଯ୍ୟ ମଣ୍ଡିତା ।
ଜାଣିଛ ତାହାର ପ୍ରାଣ
ଜାଣିଛ ତା' ମହୀୟାନ ଆଲୋକିତ ଗାଥା ॥
ବାହୁରେ ବିପୁଳ ଶକ୍ତି
ମନ ଯଥା ବିଶାଳ ଆକାଶ ।
ସକଳ ସୌଭାଗ୍ୟ ସତ୍ତ୍ୱେ
ଅପୁତ୍ରିକ ଜୀବନର ବ୍ୟଥା -
ଆଲ୍ଲାଙ୍କର ଏ କି ଫରମାସ୍ ॥

॥ ୨ ॥

ଦିନେ କେଉଁ ଦେବଦୂତ
ଦେଖାଦେଲେ ଏକାନ୍ତ ସ୍ୱପ୍ନରେ ।
କହିଲ - ବିମର୍ଷ ରାଜା !
ଛାଡ଼ ଚିନ୍ତା - ଭେଟ ସେଇ ଦୂର ସନ୍ନ୍ୟାସୀରେ ॥
ପାଇବ ବାଞ୍ଛିତ ଫଳ
ଅଦୃଷ୍ଟରେ ତାହାହିଁ ବିଧାନ ।
ଆଜମିର୍ ପାହାଡ଼ ଗୁମ୍ଫାରେ
ଅଲୌକିକ ତା'ର ଅଧିଷ୍ଠାନ ॥
ସ୍ୱପ୍ନାଦେଶ ସତ୍ୟ ହେଲା -
ସନ୍ନ୍ୟାସୀ ଆଶିଷ ବଳେ
ଯୋଧାବାଇ ହେଲେ ପୁତ୍ରବତୀ ।
ଚମକିଲା ରାଜଧାନୀ
ଚମକିଲା ସିକ୍ରୀର ଆକାଶ
-ହଜିଗଲା ଦିନ ଆଉ ରାତି ॥

॥ ୩ ॥

ତିନିରାଣୀ ପାଇଁ ତିନୋଟି ମହଲ -
ସବୁଠି ଅଲଗା ରୀତି ।
ଆଧୁନିକ ଆମ ଯୁଗ ପାରୁନି ବି
ବୁଝି ତମ କାଳନୀତି ।
କେଉଁଠାରେ ରାମ, କେଉଁଠି ରହିମ୍
କେଉଁଠାରେ ଉଭା ଈଶା ।

ସବୁଠି ଅଲଗା ରୀତି ଓ ରିୱାଜ
ସବୁଠି ଅଲଗା ଭାଷା
କେଉଁଠି ତୁଳସୀ ମୂଳେ ସଂଜଦୀପ,
ରାମଲୀଳା, କୃଷ୍ଣଲୀଳା ।
କେଉଁଠାରେ ଇଦ୍ ରୋଜା ରମଜାନ୍
କେଉଁଠି ବା ଖ୍ରୀଷ୍ଟ ମେଳା ॥

॥ ୪ ॥

ଜ୍ୟୋତିଷ ତମର ପ୍ରିୟ ସହଚର
ବୁଝୁଥିଲ ଶୁଭାଶୁଭ ।
ଯୁଦ୍ଧ ଅଭିଯାନେ ବାହାରିବା ଆଗୁ
ଦେଖୁଥିଲ ହାନି ଲାଭ ॥

ସେଥିପାଇଁ ତମେ ଦୁଇ ଜ୍ୟୋତିଷୀଙ୍କୁ
ରଖୁଥିଲ ପାଖେ ପାଖେ ।
ଦୁହିଁଙ୍କ ବିଚାର ଅମଳ କରିଣ
ଯାଉଥିଲ ନିଜ ଲାଖେ ॥

ବୀରପଣିଆରେ ଦୁନିଆ ତୁମକୁ
କରୁଛି ଶହେ ସଲାମ୍ ।
ଜ୍ୟୋତିଷକୁ ତମେ କରୁଛ ସଲାମ
କିଆଁ ଜୀବନ ତମାମ ॥

ହିନ୍ଦୁ ମୁସ୍‌ଲିମ୍ ସେ ଦୁଇ ଜ୍ୟୋତିଷୀ
ରହିଲେ ଆସନ ପାତି ।
ମିତ୍ର ପଣରେ ତମ ଦରବାରେ
ବହୁଦିନ ଗଲା ବିତି ॥



# ଆଜମିର୍ ଦରଘା

॥ ୧ ॥

ଦୁଃଖର ଘନଘଟା ଯେବେ ଛୁଏଁ ଜୀବନ ଆକାଶ,
ସେତେବେଳେ ଠୁଳହୁଏ ଆଲ୍ଲା ଠାରେ ଅସୀମ ବିଶ୍ୱାସ ।
ସେ ବିଶ୍ୱାସ ଆଣେ ଡାକି ମଣିଷଙ୍କୁ ଦିଗନ୍ତ ସେପାରୁ,
ଦରଘାରେ କୋଳାହଳ ବଳିପଡ଼େ ଉଛୁଳା ନଦୀରୁ ।

॥ ୨ ॥

ଆଜମିର୍ ଦରଘାରେ ଆଜି ଆମେ ସଂଜୟ, ସୁଧୀର, ସୁମିତା ।
ସଂଯୁକ୍ତା ଓ ସଂଘମିତ୍ରା, ନିଖିଳେଶ ସହ କବି ପ୍ରଜାପତି
ଦେଖୁଅଛୁ ଅଦୃଷ୍ଟର କୋମଳ ମମତା ॥
*ଇତିହାସ ମୂକସାକ୍ଷୀ – ଦୁଃଖୀ ଆକବର ଦିନେ
ଚାଲି ଚାଲି ଏହି ପୀଠେ ଆସିଥିଲ ଧାଇଁ ।
ଅପୁତ୍ରିକ ଜୀବନର ବିଷାକ୍ତ ବେଦନା
ସୁଫି ସନ୍ଥ ସଲିମ୍‌ର ମନ ଥିଲା ଛୁଇଁ ॥
**ସାଦରେ କହିଲେ ସନ୍ଥ – ସୁପୁତ୍ର ପାଇବ ରାଜା
ଆଉ ନାହିଁ ଡେରି ।
ମାତ୍ର ଛାଡ଼ିବାକୁ ହେବ ନୂଆ ରାଜଧାନୀ –
ଆଗ୍ରା ହିଁ ପରମ ଶୁଭ, ଆଗ୍ରା ଯାଅ ଫେରି ॥

॥ ୩ ॥

***ଦଶହରା ଗହଳି ଚହଳି ଆଜମିର୍ ଉତ୍ସବ ମୁଖର ।
ଦର୍ଗାରେ ପ୍ରବଳ ଭିଡ଼ ସବୁ ଜାତି, ସବୁ ଧର୍ମ, ସବୁ ବିଶ୍ୱାସର ॥

କିଏ ହିନ୍ଦୁ, କିଏ ଶିଖ, କିଏ ଜୈନ, କିଏ ବା ଖ୍ରୀଷ୍ଟାନ ।
ସଭିଏଁ ଏଠାରେ ଆଜି ଏକ ମନ, ଭୁଲିସବୁ ମାନ ଅଭିମାନ ॥

ଆଜମିର୍ ପାହାଡ଼ ଶିଖରୁ ମନେପଡ଼େ
ଜଗନ୍ନାଥ ଭକତ ବତ୍ସଳ ।
ରନ୍ଧାଭୋଗ ନଷ୍ଟହୁଏ ଅନାହୁତ ଉପବାସେ
ତମେ ହୁଅ ତହଳବିକଳ ॥
ପଣ୍ଡା ପଡ଼ିହାରୀ ଦଳ ଖୋଜୁଥାନ୍ତି ଖାଲି
କିଏ ଛୁଆଁ କିଏ ସେ ଅଛୁଆଁ ।
କି ନିଶାପ କର ବସି ଜଗତର ନାଥ ତମେ
କୋଠ ଭୋଗଖିଆ ହେ ଚକା ଆଖିଆ ॥

ଆଜମିର୍ ଛାଡ଼ିବା ଠାରୁ ଆମେ ଖାଲି ଚର୍ଚ୍ଚା କଲୁ

ଆମ ଜଗନ୍ନାଥ ।

ଜାଣେ ଖାଲି ବିଶୃଙ୍ଖଳା ଜାଣେ ଖାଲି ଲୁଣ୍ଠନ

ଓ ଗଂଜଣାର ପଥ ॥

ବାହାରକୁ ବଡ଼ପଣ ଜଗନ୍ନାଥ

ଆଦି ଅନ୍ତ ପରମ ପୁରୁଷ ।

ସାଆନ୍ତ ସେବକ ମିଶି ଦିନରାତି

ଶୋଷୁଛନ୍ତି ଭକତ ଆୟୁଷ ॥



* ଆକବରଙ୍କ ପ୍ରଦତ୍ତ ବିଶାଳ ପିତଳ ହଣ୍ଡା ଆଜମିର ଦର୍ଘାରେ ସୁରକ୍ଷିତ ।

** ସନ୍ଥ - ଖ୍ୱାଜା ମଇନୁଦ୍ଦିନ୍ ଚିସ୍ତି ।

*** ଦଶହରା - ୨୦୦୮, ଅକ୍ଟୋବର ।

# ପୁଷ୍କର

॥ ୧ ॥

ପର୍ବତମୟ ପ୍ରଦେଶ, 'ପୁଷ୍କର'ର ପୂତ ସରୋବର ।
ବ୍ରହ୍ମାଙ୍କର ପ୍ରିୟ ଭୂମି ବ୍ରହ୍ମାଲୋକ ଜଗତ ସୁନ୍ଦର ॥
ଅଗଣିତ ମୁନିଋଷି ନିସେବିତ ତପୋଭୂମି
ବ୍ରହ୍ମାଙ୍କର ଯଜ୍ଞଭୂମି ନିତ୍ୟ ପବିତ୍ରିତ ।
ଦେବତାଙ୍କ ଲୀଳାଖେଳା ଯାର ପ୍ରତି ଧୂଳିକଣା
ଗାଏ ଗୀତ ମହାଦେବୀ ଗାୟତ୍ରୀ ଚରିତ ॥
ସେଦିନ ସଂଜୟ ଦେଲା ସନାତନ ଭାରତର
ପ୍ରାଣ ପରିଚୟ ।
ପୁଷ୍କରର ପୁଣ୍ୟ ସ୍ନାନ ଦେବଲୋକ ପିତୃଲୋକ
ମୋହ ଆଉ ମୁକ୍ତିର ଅନ୍ୱୟ ॥

ବହୁଦିନୁ ଜାଣିଥିଲି ପୁଷ୍କରର ବିପୁଳ ମହିମା ।
ବହୁଦିନୁ ଥିଲା ମୋର ପୋଥିଗତ ପାଠର ଗାରିମା ॥
ନଥିଲା ଧାରଣା ମୋର ପୁଣ୍ୟତାର ଗୈରିକ ବିଭବ ।
ବିସ୍ମୟରେ ପ୍ରଣମିଲି ଦୁଇଦେବୀ – ସାବିତ୍ରୀ, ଗାୟତ୍ରୀ
ଏବଂ ବ୍ରହ୍ମଦେବ ॥

ଉତ୍ତୁଙ୍ଗ ପର୍ବତମାଳା ଛୁଇଁଯାଏ ଦିଗନ୍ତୁ ଦିଗନ୍ତ ।
ତା' ଭିତରେ ମଣିଷର ବିରାଟ କଳ୍ପନା, କାଳାତୀତ ଅକ୍ଷର ଅନନ୍ତ ॥
ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ବିଶାଳ ମନ୍ଦିର ଏବଂ
ସବୁ ଦେବଦେବୀଙ୍କର ଏହି ଲୀଳାସ୍ଥଳୀ ।
ନିର୍ବିକାର ନିର୍ବିଚାରେ ବିଶ୍ୱର ସବୁ ମଣିଷ
ସୃଜନ କରତା ପଦେ ନିବେଦନ୍ତି ପ୍ରୀତି ପୁଷ୍ପାଞ୍ଜଳି ।

॥ ୨ ॥

ପୁଷ୍କରେ ଦୁଷ୍କରଂ ବାସଃ ପୁଷ୍କରେ ଦୁଷ୍କରଂ ବପଃ
ପୁଷ୍କରେ ଦୁଷ୍କରଂ ଦାନଂ ଗନ୍ତୁଚୈବ ସୁଦୁଷ୍କରମ୍ ।
ଯଦିଓ ଦୁଷ୍କର ପଥ ! ଏହିଠାରେ ସମବେତ ସକଳ ସନ୍ନ୍ୟାସୀ
ମୁନିଋଷି, ଆଚାର୍ଯ୍ୟ ମନୀଷୀ ।
ସବୁ ରାଜା ମହାରାଜା, ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀ
ବେଦଜ୍ଞ ବ୍ରାହ୍ମଣ ଏବଂ ବିଦ୍ୱାନ ବିଦୂଷୀ ॥

ସନାତନ ଧର୍ମର ପ୍ରତିଷ୍ଠା ପାଇଁ ସତ୍ୟ ଦ୍ୱାପର ତ୍ରେତୟା-
କାଳେ କାଳେ ପୁଷ୍କରର ପ୍ରକଟ ଓ ଅପ୍ରକଟ ଲୀଳା ।
କଳି ଏଠି ପରାହତ, ହରାଇଛି ପ୍ରବଳ ପ୍ରତାପ,
ହରାଇଛି ତା'ର ଦୁଷ୍ଟକଳା ॥

ଆରାବଳି ଉଚ୍ଚ ଗିରିମାଳା ମଧ୍ୟେ
ବିରାଜିତ ପବିତ୍ର ପୁଷ୍କର, ଜଳରାଶି ବରଦ ଶୀତଳ ।
ମାଟି ପାଣି ଆଲୁଅ ଅନ୍ଧାର, ସବୁଥିରେ ମିଶିଅଛି
ଦେବତାର ଆଶୀର୍ବାଦ, ଶୋଷିନିଏ ପାପରାଶି,
ଶୋଷିନିଏ ସବୁ ଅମଙ୍ଗଳ ।

॥ ୩ ॥

ଏକଦା ପୁରାଣ ପୁରୁଷ ବ୍ରହ୍ମାଙ୍କର କରଶୋଭି କମଳରୁ
ଝଡ଼ିଗଲା ତିନୋଟି ପାଖୁଡ଼ା ।
ପ୍ରତି ପାଖୁଡ଼ା ସଂଘାତେ ସୃଷ୍ଟିହେଲା ଗୋଟିଏ ପୁଷ୍କର
ଦେବଂଗଣ ଲୋଭନୀୟ ଏକ ଏକ ଜଳର ଖସଡ଼ା ॥
ଅବିଳମ୍ବେ ଡକାହେଲା ଦେବସଭା –
ସମାଧାନ ଲାଗି ହେଲେ ଦେବରାଜ ଏକାନ୍ତ ତତ୍ପର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ହେଲେ ଆନନ୍ଦିତ
ପାଇ ନିଜ, ନିଜ ଅଧିକାର ॥
ହୋଇପାରେ ଗପ ମିଛ, ବେଦ ମିଛ, ପୁରାଣ ବି ମିଛ ।

ପ୍ରତିଟି ପୁଷ୍କର କିନ୍ତୁ ଜଗାଏ ମନ୍‌ରେ
ଶେଷହୀନ ପ୍ରୀତି ଓ ରୋମାଞ୍ଚ ॥

ଆଜି ବ୍ରହ୍ମା ପୁଷ୍କର ଜଳରେ କରୁ ଆମେ ସୂର୍ଯ୍ୟର ବନ୍ଦନା
ଆକାଶରେ ଆଙ୍କୁ ଆମେ
ପିତା ଏବଂ ପ୍ରପିତାଙ୍କ ବିସ୍ମୃତ ଭାବନା ॥
ହେ ମୋର ପୂଜ୍ୟ ପିତା, ପୂଜ୍ୟ ମାତା,
ପ୍ରପିତା ପ୍ରମାତା ।
ଯେତେସବୁ ସ୍ୱର୍ଗବାସୀ ଜ୍ଞାନଦାତା,
ଅନ୍ନଦାତା, ମନ୍ତ୍ରଦାତା,
ସେବା / ସ୍ନେହ ଦାତା ।
ସଭିଙ୍କୁ ପ୍ରଣାମ ମୋର ସଭିଙ୍କୁ ଜଣାଏ
ମୋର ହୃଦ କୃତଜ୍ଞତା ॥
ଜଳ ନିଅ, ଫଳ ନିଅ, ଅନ୍ନ ନିଅ, ବସ୍ତ୍ର ନିଅ
ନିଅ ମୋର ଧନଧାନ୍ୟ ସକଳ ସଂପଦ ।
ମୁଁ ଅଧମ ମୂଢ଼ମତି ହେ ଅତୃପ୍ତ ଆତ୍ମାଗଣ ।
କ୍ଷମାକର ମୋର ଅପରାଧ ॥

॥ ୪ ॥

ପଚାରିଲା ପୁରୋହିତ -ସତୀଶ ପୁଷ୍କରା-
ଆମ ନାମ ଧାମ ଗୋତ୍ର ପରିଚୟ ।
ଚମକିପଡ଼ିଲା ଶୁଣି ପୁରୀଧାମ ଶ୍ରୀକ୍ଷେତ୍ର
ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ବିଶ୍ୱର ବିସ୍ମୟ ॥
ରୋଷଶାଳେ ରଂଧାହୁଏ କେଉଁପରି
ଲକ୍ଷ ଲକ୍ଷ ଭକ୍ତଙ୍କର ଅନ୍ନ ଓ ବ୍ୟଞ୍ଜନ ।
ବ୍ରାହ୍ମଣରୁ ଚାଣ୍ଡାଳ ପର୍ଯ୍ୟନ୍ତ ଏକ ସଂଗେ ସେହିଠାରେ
ଆହ୍ଲାଦରେ କରନ୍ତି ଭୋଜନ ॥

ତାଙ୍କ ନାମେ କେତେ ଗପ କିଂବଦନ୍ତୀ
ଅସରନ୍ତି ଅବୁଝା କାହାଣୀ ।
ଆମେ ସବୁ ରାଜସ୍ଥାନୀ ମରୁବାସୀ ଚାହୁଁ ଥରେ
ଜୀବନରେ ଦେଖିବାକୁ ତାଙ୍କ ନେତ୍ରମଣି ॥
ସେ ଜଗନ୍ନାଥଙ୍କ ଡୋର ଡାକୁଛି ଆମକୁ
ବୁଝିନାହୁଁ କିଆଁ ନିରନ୍ତର ।

କାହା ଅଭିଶାପ ବଳେ ହେଲେ
ହସ୍ତପଦହୀନ ଦୁନିଆର ଅଦ୍ଭୁତ ଠାକୁର ॥
ହେ ଶ୍ରୀକ୍ଷେତ୍ରବାସୀ ବଂଧୁ
କର ମୋତେ କର ଆଲିଙ୍ଗନ ।
ଧନ୍ୟ ହେଉ ମୋ ଜୀବନ ମୋ କଳ୍ପନା
ଧନ୍ୟ ହେଉ ମୋର ଅନୁଷ୍ଠାନ ॥

ଜଗନ୍ନାଥ ! ତମେ କି ଅପୂର୍ବ ମାୟାରେ ।
ବାଂଧିଅଛ ଭାରତର ବିଶାଳ ଭୂମିକୁ ।
ଦ୍ୱାରିକା ବଦ୍ରିକା ପୁରୀ ରାମେଶ୍ୱର -
ଡାକେ ସଦା ମଣିଷର ଆକୁଳ ଆତ୍ମାକୁ ॥
ସେହିପରି ଡାକେ ଗଂଗା ଗୋଦାବରୀ
ନର୍ମଦା କାବେରୀ ।
ଯମୁନା ଓ ସରସ୍ୱତୀ, ପ୍ରୟାଗ ଓ ପୁଷ୍କରାଦି
ଜଳର ଭଉଁରୀ ॥
ଏତେ ସବୁ ମୁକ୍ତିର ସୋପାନ ସମ୍ମୁଖରେ
ମଣିଷର ପ୍ରୀତିର ସୋପାନ ।
ମୃତ୍ୟୁର ଆବର୍ତ୍ତ ଡେଇଁ ଦେଉଅଛି
ଜୀବନକୁ ଅମୃତ ସଂଧାନ ॥



# ଶେଷକଥା : ପୁରୀ

॥ ୧ ॥

ସୁଜାତାର ଦିଲ୍ଲୀ ନିବାସରେ ସରେନାହିଁ ଆମର ବିଚାର ।
ପବିତ୍ର ଉତ୍କଳଭୂମି ଆଜି କିଆଁ ଅପବିତ୍ର
ଆଜି କିଆଁ ଅଶାନ୍ତି ଓ
ଅସତ୍ୟରେ ଗନ୍ତାଘର ॥
ଦେହଲୋଭୀ, ଧନଲୋଭୀ ଅତ୍ୟାଚାରୀ ଅସୁରର ଦଳ
ଚଳାଇଛି ତା'ର ରାସଲୀଳା ।
ପ୍ରତିରୋଧ କରିବାକୁ ଆମେ ସବୁ ଶକ୍ତିହୀନ
ଆମେ ସବୁ ଅଭିଶପ୍ତ ପଙ୍ଗୁ ବୃହନ୍ନଳା ॥
ଜଗନ୍ନାଥ ନାମରେ ଶୋଷଣ
ଜଗନ୍ନାଥ ନାମେ ଚାଲିଅଛି ମିଥ୍ୟା ସଂକୀର୍ତ୍ତନ
ଏବଂ ମିଥ୍ୟା ସଂଭାଷଣ ।
ତମେ କିଆଁ ନିରୁତ୍ତର । ଜଗନ୍ନାଥ ଦେଖୁଛ ଶୁଣୁଛ ସବୁ
ଓଡ଼ିଆଙ୍କ କାରନାମା
ଓଡ଼ିଆଙ୍କ ମିଶାଣ ଫେଡ଼ାଣ ॥

ଜଗନ୍ନାଥ - ତମେ ରାମ, ତମେ କୃଷ୍ଣ
ତମେ ବୁଦ୍ଧ, ତମେ ଜୀନ ତୀର୍ଥଙ୍କର ।
ତନ୍ତ୍ରର ମହାଭୈରବ, କେତେବେଳେ ସଦାଶିବ
କେତେବେଳେ ଶ୍ରୀଦୁର୍ଗା ଶଙ୍କର ॥

॥ ୨ ॥

କାଠର ଦେବତା ତୁମେ
ପୁଣି ରତ୍ନ ସିଂହାସନର ଦେବତା ।
ମନେଅଛି ସୁଦାମାର ଶାଗଭଜା
ଖୁଦଭଜା ଭିତରେ କି ନିବିଡ଼ ମମତା ॥
ମନେଅଛି ଶବରୀର ଅରଣ୍ୟ କୁଟୀର
ମିଠାକୋଳି ଉଛିଷ୍ଟ ଭୋଜନ ।
ମନେଅଛି ପ୍ରହ୍ଲାଦର ଆହ୍ଲାଦିତ
ନରସିଂହ ରୂପ ପୁଣି
ବଳିଦ୍ୱାରେ ଭିକ୍ଷାସୀ ବ୍ରାହ୍ମଣ ॥

॥ ୩ ॥

ଜଗନ୍ନାଥ ତମେ କ'ଣ ଏହିପରି ଅବୁଝା ଠାକୁର
କେତେବେଳେ ଚଣ୍ଡାଳର
କେତେବେଳେ ପୁଣି ବ୍ରାହ୍ମଣର ।
କେତେବେଳେ ଗଜପତି ରାଜାର ବା
କେତେବେଳେ ମାଣିକପାଟଣା
ଗଉଡୁଣୀ ଅଧମ ପ୍ରଜାର ॥

କେତେବେଳେ କରୁଣାରେ ଛଳଛଳ
ତମେ ଆହେ ଭକତବତ୍ସଳ ପ୍ରଭୁ
ଭକ୍ତର ଗଣ୍ଠିଧନ କେବଳ ଭକ୍ତର ।
କେତେବେଳେ ତମେ ଶୂନ୍ୟ ପରଂବ୍ରହ୍ମ ନିରାକାର
କେତେବେଳେ ସୂର୍ଯ୍ୟ, ଚନ୍ଦ୍ର, କ୍ଷର ଓ ଅକ୍ଷର ॥

ନା', ଏ ସବୁ କବିର କଳ୍ପନା

ଦରିଦ୍ରର ଆକୁଳ ପ୍ରାର୍ଥନା

ଅବା ଦୁର୍ବଳର ସର୍ବଶକ୍ତିମାନ ଜୀବନ୍ତ ଦେବତା ।

ନା', ଏ ସବୁ ଧନୀକର ଅର୍ଥବଳ

ନା', ପ୍ରାଚୁର୍ଯ୍ୟର ପ୍ରଦର୍ଶନୀ

ନା', ପଣ୍ଡା ପଡ଼ିହାରୀ ବଂଚିବାର ସୁରମ୍ୟ ଶଠତା ॥

॥ ୪ ॥

ମୁଁ ତ କେଉଁ ଧୂଳିକଣା କିବା ଜାଣେ ପାହାଡ଼ର ମୂଳ ।

କେହି ମୋତେ କହିଦିଅ ସତ କ'ଣ ମିଛ କ'ଣ, ଖୋଲିଦିଅ ଆଖିର ପଟଳ ॥

**- ସମାପ୍ତ -**



**ଡ.ବନମାଳୀ ବାରିକ**
ଇଡ଼ଦା, ବସ୍ତା, ବାଲେଶ୍ୱର
ଶିକ୍ଷା : ବି.ଏ.(ଅନର୍ସ) ଅର୍ଥନୀତି, ଫକୀରମୋହନ କଲେଜ
ଏମ୍.ଏ.(ଓଡ଼ିଆ), ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ, ଶାନ୍ତିନିକେତନ
ପିଏଚ୍.ଡ଼ି., ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଓଡ଼ିଶାର ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧାପନା କରି ପରିଶେଷରେ ୨୦୦୩ ମସିହାରେ ଭୁବନେଶ୍ୱରସ୍ଥ ରାଜଧାନୀ ଜୁନିୟର କଲେଜର ଅଧ୍ୟକ୍ଷ ଥାଇ ସ୍ୱେଚ୍ଛାକୃତ ଅବସର ନେଇଛନ୍ତି । ଡ.ବାରିକ ଜଣେ ସାହିତ୍ୟ ସମାଲୋଚକ ଓ ମୌଳିକ ସ୍ରଷ୍ଟା । ତାଙ୍କ ରଚିତ ପୁସ୍ତକ ମଧ୍ୟରେ ରହିଛି - କବିତା ସଂକଳନ 'କସ୍ତୁରୀ ନଦୀର ଗନ୍ଧ', 'ଅନ୍ୟ ଅଙ୍ଗୀକାର', 'ରାଗର ନାମ ଅନୁରାଗ', 'ସମୟର ପ୍ରତିଧ୍ୱନି', 'ମହାନଦୀ କ'ଣ ବୁଝେ' ଏବଂ 'ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତିକାବ୍ୟ', 'ଗାନ୍ଧିଜୀ ଓ ଗଣଶିକ୍ଷା', 'ଗାନ୍ଧିଜୀଙ୍କ ଦୃଷ୍ଟିରେ ପଞ୍ଚାୟତରାଜ', 'ଗବେଷଣା ବିଧି ଓ ଅନୁବାଦ କଳା', 'ଇଂରାଜୀ କାବ୍ୟ ଚର୍ଚ୍ଚାର ନୂତନ ପରମ୍ପରା', 'ଗାନ୍ଧିଙ୍କ ଅନନ୍ୟ ନେତୃତ୍ୱ', 'ବିନୋବାଙ୍କ ଦୃଷ୍ଟିରେ ଗାନ୍ଧି ଓ ମାର୍କ୍ସ' ତଥା 'ଓଡ଼ିଶାର ଅତୀତ ବିଭବ ଓ ରଙ୍ଗଲାଲ ବନ୍ଦୋପାଧ୍ୟାୟ' ଭଳି ପ୍ରବନ୍ଧ ପୁସ୍ତକ ।

**"କେତେ ଦୂର ପୁରୀରୁ ପୁଷ୍କର"** ଡ. ବାରିକଙ୍କର ସଦ୍ୟ ପ୍ରକାଶିତ କବିତା ସଂକଳନ । ଭିନ୍ନ ସ୍ୱାଦ ଓ ଭିନ୍ନ ଚିନ୍ତନର ଏହି କବିତା ସଂକଳନଟି ସୁଖପାଠ୍ୟ ହେବ ବୋଲି ଆମେ ଆଶା ରଖୁ ।

-ପ୍ରକାଶକ

ସୁବର୍ଣ୍ଣଶ୍ରୀ ପ୍ରକାଶନୀ